ଲେଖକ:—

ଶ୍ରୀ ଗୋପବନ୍ଧୁ ଚୌଧୁରୀ

ପ୍ରଥମ ସଂସ୍କରଣ ୧୯୫୭—୫୦୦୦

ପ୍ରକାଶକ:—

ଗ୍ରାମ ସେବକ ସମବାୟ ପ୍ରକାଶନ ଲି:

ବାଖରାବାଦ

କଟକ—୨

# ୧୯୪୭

—କ୍ରତୁ—

ଗାନ୍ଧୀ ଯାଆନ୍ତେ ଦେହ ଛାଡ଼ି,
ଆମ୍ଭେ ଯେ ଥିଲୁ ବନ୍ଧାପଡ଼ି ।
ପଶିଲ ସର୍ବଦେହେ ଯାଇ
ସରବେ ଦେଲୁକ ଚେତାଇ ।
ମିଳି ଅନୁଚର ସକଳେ,
ବିଗୃହ କଲେ ଏକସ୍ଥଳେ,
ପୂରଣେ ଗାନ୍ଧୀଙ୍କ କରମ
କରିବେ ସର୍ବେ କେଉଁ କାମ ।
ଦୁଇଟି ଗାନ୍ଧୀ କରୁଥିଲେ,
ଗୋଟିକୁ ଅଧା ରଖିଗଲେ ।
ଅଗ୍ରେ ଅହିଂସା ଶକତି,
ସାଧିଲେ ଦେଶର ମୁକତି,
ସ୍ୱରାଜ୍ୟ ଦରିଦ୍ର ଦୁଆରେ,
ଆଣି ଯେ ଦେବେ ସେ ଅଚିରେ,
ଶେଷ କାମଟି ଅଧା ଥିଲା,
ଦଇବ ତାଙ୍କୁ ଘେନିଗଲା ।
ବନ୍ଧୁ ପୁଅଙ୍କୁ କହୁଥିଲେ,
ସରବୋଦୟ ନ ଆପିଲେ,

ସ୍ୱରାଜ୍ୟ ପୂର୍ଣ୍ଣ ହେବନାହିଁ,
ଗାଉର ଦୁଃଖ ଥିବ ରହି ।
ତେଣୁ ମିଳି ସେ ଅନୁଚରେ,
କଲେ ସଂକଳ୍ପ ଏକ ସ୍ୱରେ,
ସର୍ବୋଦୟର ଆଦରଣେ,
ଗଢ଼ିବେ ସମାଜ ଏ ଦେଶେ ।
ସଂକଳ୍ପୁ ହୋଇଲା ଉଦୟ,
ବରାଠ କଳୁ ସର୍ବୋଦୟ ।
ଶାସ୍ତ୍ରେ ସଂକଳ୍ପ ଏ ସମ,
ବୋଲାଏ କଳୁ ମହାନାମ ।

———

—ଯଜ୍ଞ—

ବିନୋବା ଗାନ୍ଧୀ ଶିଷ୍ୟମଣି,
ଥାଇ ସେ ଗ୍ରାମେ ଏକ ପୁଣି
ଆଚରୁଥିଲେ ଗାନ୍ଧୀ ଧର୍ମ,
କରୁଥିଲେ ଜନ ସେବାକର୍ମ ।
ସ୍ନେହ ପାଇ ସେ ପୁତ୍ର ସମ,
ଅହିଂସା ଧର୍ମେ ଅନୁପମ ।
ପ୍ରଥମ ସତ୍ୟାଗ୍ରହୀ ରୂପେ,
ପଠାଇଥିଲେ ଗାନ୍ଧୀ ଆପେ ।
ପିତା ହରାଇ ଗାନ୍ଧୀ ସମ,
ପଡ଼ିଲେ ଚିନ୍ତାରେ ଅସୀମ,

ସ୍ମରି ସେ କଥା ବହନ,
କହନ୍ତି ବିନୋବା ଆପଣ,
"ବାପ ଥିବା ପୁଅ ସମାନ,
କରୁଥିଲି କାଳ ଯାପନ
ଏବେ ପଡ଼ିଲି ଚିନ୍ତା ଘୋର,
ପୂରିବ କାମ ପିତାଙ୍କର ।"
ଏମନ୍ତ ଭାବ ଗୁଣମଣି,
ହେଲେ ସର୍ବୋଦୟ ଅଗ୍ରଣୀ ।
ଦେଶରେ ହିଂସା ସେ ଦେଖିଣ,
ସଦା ଅଥୟ ତାଙ୍କ ମନ
କହନ୍ତି ସେହି ବନ୍ଧୁମେଳେ,
"ଦେଖାଅ ବାଟ ଜାଣିଥିଲେ,
ସତେ କି ମଠ ହାତୁ ଯିବ,
ଅହିଂସା ଠେକ ନ ରହିବ ?"

× × × ×

ଏକ ଯେ ସର୍ବୋଦୟ ମେଳା,
ହାଇଦ୍ରାବାଦେ ବସୁଥିଲା ।
ବିଚାର କଲେ ମନେ ତେବେ,
ସେଠାକୁ ଚାଲିଚାଲି ଯିବେ ।
ହାଇଦ୍ରାବାଦେ ଭାଗ ଏକ,
ତେଲେଙ୍ଗାନା ତା' ନାମ ଡାକ ।
ସେଠାରେ କରୁଥିଲେ ଗୋଳ,
ସବୁ ଗରିବେ ବାନ୍ଧି ମେଳ ।

ଧର୍ମଏ ଗଣିଲେ ପ୍ରମାଦ,
ସୃଜିଲା ତୁମୁଳ ବିବାଦ ।
ହିଂସା ଯେ ପ୍ରବଳ ଆକାର
କରୁଥିଲାଟି ଛାରଖାର ।
ଦେଖିବା ପାଇଁ ଛନ ଛନ
ଅଥୟ ବିନୋବାଙ୍କ ମନ ।
ନଅଁରେ ଦେଲେ ଯାଇ ଝାସ,
ହୋଇ ଯେ ପାରିବେ ଅହିଂସ;
ଏମନ୍ତେ ମନରେ ବିଚାରି,
ହାଇଦ୍ରାବାଦେ ସଭା ସାରି
ବୁଲିଲେ ପାଦେ ଚାଲି ଚାଲି
ତେଲେଙ୍ଗାନାର ପୁରପଲ୍ଲୀ ।
ଅହିଂସା ବିନା ସର୍ବୋଦୟ
ହେବ ଯେ ନାହିଁ ସୁନିଶ୍ଚୟ ।
ଖୋଜି ବୁଲିଲେ ସେହି ପଥ
ଯହିଁରେ ମହୀ ହେବ ଶାନ୍ତ ।
ସେଯାଏ ଭୂଦାନ ସପନ
ଛୁଇଁ ନ ଥାଏ ତାଙ୍କ ମନ ।
ଭୂଦାନ ଆସି ଆଚମ୍ବିତେ
ମିଳିଲା ତାଙ୍କର ଅଜ୍ଞାତେ ।
ଚିନ୍ତାରେ ବିନୋବା ଭ୍ରମନ୍ତି,
ଗ୍ରାମରେ ସଭା କରୁଥାନ୍ତି ।
ଦିନେ ଗରିବ ଥୋକେ ମିଳି
ସଭାରେ କଲେ ଆସି ଅଳି,

"ନ ମିଳିଲ ମୂଲ ଗ୍ରାମାଞ୍ଚଳେ,
ନ ଅଛି ଜମି ହେଲେ ଛଳେ,
କେମନ୍ତେ ପୂରାଇବୁ ପେଟ
ଦେଖାନ୍ତୁ ଆମକୁ ସେ ବାଟ ।"
ପଡ଼ିଲା ଭାଳେଣି ବିକଟ,
ଦେଲେକ ପ୍ରଭୁ ଯେ ସଂକଟ,
"ନୁହଇ ମୁହିଁ ମହାଜନ,
କରି ନ ପାରେ ଧନ ଦାନ,
ନୁହଇ ମୁହିଁ ଅଧିକାରୀ,
ଜମି ମୁଁ ବାଣ୍ଟିବି କପରି ?"
ଏସନ ଚିନ୍ତାରେ ପଡ଼ିଣ
ମନ ହୋଇଲା ଉଦ୍‌ବିଗ୍ନ ।
ପ୍ରଭୁ ଯେ ଦେଲେ ଏ ସଂକେତ,
ପଲ୍ଲୀର ଜନେ ସମବେତ,
ସବୁରିଠାରେ ନାରାୟଣ
କରିବେ ସନ୍ଦେହ ମୋଚନ ।
ସଭାରେ ଲୋକେ ବସିଥିଲେ,
ଧନୀ ଶିକ୍ଷିତ ସର୍ବଭୂଲେ,
ସମସ୍ୟା ରଖନ୍ତେ ଅଗ୍ରତେ
ବିଗ୍ରୀର ପଡ଼ିଲା ଭୂରିତେ ।
ଆପଣା ମଧ୍ୟେ ବିଗ୍ରୀରିଲେ
ଜଣେକ ଉଠି ଯେ କହିଲେ,
"ନାହିଁଟି ଧନ ଆମ ପାଶ,
ଚଳନ୍ତୁ ସର୍ବେ କରି ଗୃହ,

ଭୂମି କଅଁନେ ଦେଇପାରୁଁ,
ଏଥିରେ ତାଙ୍କ ଦୁଃଖ ହରୁ ।”
ଦେଲେ ସେ ଏକଶ ଏକର
ତହୁଁ ଚକିତ ନାଗ୍ରିକର ।
ଭାଇ ଭାଇର ଦୁଃଖ ପାଇଁ,
ଆପଣା ପେଟୁ କାଟି ଭୂଇଁ
ଦେଇ ଆନନ୍ଦ ପୂର୍ଣ୍ଣ ଚିତ୍ତ,
ବିନୋବା ଦେଖି ଅଚମ୍ଭିତ ।
ପ୍ରଭୁଙ୍କ ସଙ୍କେତ ମଣିଲେ,
ଭୂଦାନ ଯଜ୍ଞ ନାମ ଦେଲେ ।
ପୂରଣେ କରୁ ସର୍ବୋଦୟ
ଯଜ୍ଞର ହେଲାଟି ଉଦୟ ।

---

—ହ୍ୱାହା—

ଯଜ୍ଞର ପ୍ରସାରେ ମାତିଣ ବୁଲିଲେ,
ଗ୍ରାମୁଁ ଗ୍ରାମେ ଯାଇ ଭୂଦାନ ପାଇଲେ
ମଣିଲେ ଏହାକୁ ଈଶ୍ୱର ନିର୍ଦ୍ଦେଶ,
ଭୂମିହୀନ ଲୋକେ ଲଭିଲେ ସନ୍ତୋଷ ।
ମିଳନ୍ତେ ଏକର ଦ୍ୱାଦଶ ହଜାର,
ହାଇଦରାବାଦ ହୋଇଲା ସୁସ୍ଥିର ।
ଭାରତେ ଅଛନ୍ତି ଯେତେ ଭୂମିହୀନ
ପାଞ୍ଚକୋଟି ଦାନେ ଉଦର ପୂରଣ ।

ଯାଇବା ଯାବତ ମାଗି ବୁଲୁଥିବେ,
ଭୂମିର ସମସ୍ୟା ନଷ୍ଟ ଭୁଟାଇବେ ।
ଅହିଂସା ମାର୍ଗରେ ହୋଇବ ସ୍ଥାପନ
ସରବୋଦୟର ଭିତ୍ତି ସୁସନ୍ଧାନ ।
ବାଉଁଶ ଖଣ୍ଡକ ଯୋଗ୍ୟ ହେଲେ ପୁଣ
ବଂଶୀଧ୍ୱନି ତହିଁ ବାହା'ରେ ସୁସ୍ୱନ,
ତେସନ ଭିତରୁ ଅହଙ୍କାର ଗଲେ
ପ୍ରଭୁଙ୍କ ନିର୍ଦ୍ଦେଶ ପ୍ରକାଶଇ ଭଲେ ।
ଏସନ ବିଶ୍ୱର ମନରେ ଧରଣ
ସତ୍ୟାଗ୍ରହ ପଣ ହେଲା କମେ ଠାଣ ।
ମାତ୍ର ଏ ସନ୍ଦେହ ଉଠିଲା ମନରେ,
ଦେଉଛନ୍ତି କି ସେ ଆପଣା ଇଚ୍ଛାରେ ?
ଦେଇ ତ ନାହାନ୍ତି ଅବା ପ୍ରାଣଭୟେ,
ପରଖ କରିବା କେସନ ଉପାୟେ ।
ହାଇଦରାବାଦୁ ଗୃହ ଛାଡ଼ିଯିବା
ନାହିଁ ଗୋଳ ଯହିଁ ମାଗିଣ ଦେଖିବା ।
ଉତ୍ତରେ ଗଲେ ସେ ଦିଲ୍ଲୀ ଅଭିମୁଖ,
ଭୂଦାନ ଯଜ୍ଞର ହେଲା ଯେ ପରଖ ।
ଅଧିକୁ ଅଧିକ ଭୂମି ମିଳିଗଲା,
ତାଙ୍କର ବିଶ୍ୱାସ ଠାଣୁ ଠାଣ ହେଲା ।
ଏକା ଏକା ବୁଲି ଉତ୍ତର ପ୍ରଦେଶ,
ମାଇ ମାଆଁଳନ୍ତି ଲଭିଲେ ସନ୍ତୋଷ ।

---

## —ହୋମକୁଣ୍ଡ ସ୍ଥାପନ—

ଯଜ୍ଞର ସଫଳେ ପଡ଼ିଲା ଚହଳ
ଜାଗିଣ ଉଠିଲେ ସର୍ବୋଦୟ ଦଳ,
ସ୍ୱଜନଗଣ ଲୋକେ ଦେଲେ ଥୋକେ ଯୋଗ
ନାନା ପ୍ରଦେଶରେ ବଢ଼େ ଅନୁରାଗ ।
ସର୍ବସେବାସଂଘ କଲେ ଯେ ବିଚାର
ସାରା ଭାରତରେ କରିବେ ପ୍ରଚାର,
କରିବେ ପଚାଶ ଲକ୍ଷ ଯେ ଏକର
ଦୁଇ ବର୍ଷରେ ହେବ ତାହା ସାର ।
ପ୍ରଦେଶେ ପ୍ରଦେଶେ ଗଢ଼ିଲେ ସମିତି
ଶହ ଶହ କର୍ମୀ ଲାଗିଲେ ସଂପ୍ରତି,
ଗାନ୍ଧୀନିଧି ଦେଲା ଅର୍ଥର ସାହାଯ୍ୟ
ସହଜେ ଚଳିଲା ଏ ବିରାଟ କାର୍ଯ୍ୟ;
ହୋମାଗ୍ନି ହୁଅନ୍ତେ ଏମନ୍ତେ ସ୍ଥାପନ
ପଡ଼ିଲା ତହିଁରେ ଆହୁତି ବହନ ।
ଚୁଲିଥାଏ ତେଣେ ଯାତ୍ରା ଯେ ତାଙ୍କର
ନ ଥାଏ ବିରାମ ନ ସହେ ଉଚ୍ଛୁର,
ଉତ୍ତର ପ୍ରଦେଶୁ ବିହାରେ ପଶିଲେ
ସଂକଳ୍ପ ନୂତନ ତହିଁ ପୁଣି କଲେ ।
ପ୍ରଦେଶେ ଅଛନ୍ତି ଯେତେକ ଭୂମିହୀନ
ତାଙ୍କ ପାଇଁ ଲୋଡ଼ା ଯେତେ ଭୂମିଦାନ,
ବୁଲି ବୁଲି ନିଜେ କରିବେ ସଂଗ୍ରହ
ଦେଶବାସୀଙ୍କର ତୁଟିବ ସନ୍ଦେହ ।

ଦୁଇବର୍ଷ କାଳ ବିହାରେ ବୁଲିଣ
ଯତନେ କଲେ ସେ ଅଭୀଷ୍ଟ ସାଧନ ।
ବିହାରୁ ଉତ୍କଳେ ଆସିବେ ବୋଲିଣ
ଅନେକ ଦିନରୁ କହୁଥିଲେ ପୁଣ ।
ମାଟିରେ ଯାହାର ପ୍ରତି ରଜକଣ
ସାଧୁ ସନ୍ଥଙ୍କର ପବିତ୍ର ଚରଣ
ପରଶି ହୋଇଛୁ ଅତି ପୁଣ୍ୟବାନ,
ସେହି ପୁଣ୍ୟତୀର୍ଥେ ବିନୋବା ଦର୍ଶନ
ଆଣିଦେଲା ତହିଁ ସଂଯୋଗ ମହାନ
ସତେ ମିଳାଇଲା ମଣିରେ କାଞ୍ଚନ ।
ସାଲ ଉଣେଇଶ ଶହ ପଞ୍ଚାବନେ
ଜାନୁଆରୀ ମାସ ଛବିଶ ସୁଦିନେ
ବାଲେଶ୍ୱର ଜିଲ୍ଲା ଲକ୍ଷ୍ମଣନାଥରେ
ପଶିଲେ ଉତ୍କଳେ ବଙ୍ଗଳା ପଥରେ ।
ସର୍ବୋଦୟ କରୁ ସଂକଳ୍ପ ସାଧନେ
ଶାନ୍ତ ଦରଶନ ବାଞ୍ଛା ଥିଲା ମନେ,
ଆଶା ବାନ୍ଧିଥିଲେ ଦେଖିବେ ଉତ୍କଳେ
ଚମ୍ପବର ନଦୀ ବହିବ ଯେ ହେଲେ ।
ଭାଳେଣି ପଡ଼ିଲା ସେବକ ମହଲେ
ପୂରବ କି ଆଶା ଧାମ ନୀଳାଚଳେ,
ହେଲେଣି ସହାୟ ପୁଣି ଆଦିକନ୍ଦ
ବହିଲା ଏ ଦେଶେ ଗ୍ରାମଦାନ ନଦ ।
'ରହିବେ ନାହିଁ ଯେ ଗ୍ରାମେ ଭୂମିହୀନ'
ଉତ୍କଳେ ସେ ଧ୍ୱନି ବଦଳେ ସୁସ୍ୱନ

'ସବୁ ଭୂମି ଅଟେ ଭାଇ ଗୋପାଳର,
ନୁହଇଁ ଭୂମି କେହ୍ନ ଜଣକର'
ଭୂଦାନ ଯଜ୍ଞର ଚରମ ସୋପାନେ
ମାଲିକ କେବେହେଁ ନ ହୁଏ ଯେ ଜଣେ,
'ସକଳ ସଂପତ୍ତି ପ୍ରଭୁଙ୍କର ନାମେ
ଭୂମି ମାଲିକାନା ରହେ ଶେଷେ ଗ୍ରାମେ ।
ସାରି ପରିକ୍ରମା ଉତ୍କଳ ପ୍ରଦେଶ
ପଶିଲେ ବିନୋବା ବୀର ଆନ୍ଧ୍ରଦେଶ
ଜିଲ୍ଲା କୋରାପୁଟରୁ ଗ୍ରାମଦାନ ନଦୀ
ଗୋଡ଼ାଇଣ ଗଲା ବିନୋବାଙ୍କ ପାଦ,
କ୍ଷୀଣ ହେଲା ସ୍ରୋତ ଯଦ୍ୟପି ତାହାର
ବହୁଥିଲା ଆନ୍ଧ୍ର ହେବା ଯାଏ ପାର ।
ପଶନ୍ତେ ମାନ୍ଦ୍ରାଜେ ସ୍ରୋତ ଯେ ଟେକିଲା
ତାମିଲଙ୍କ ଦେଶ ମନ ଯେ ହରିଲା ।
ଥିଲା ତ ସେଠାରେ ସଭ୍ୟତା ପ୍ରାଚୀନ
ଆର୍ଯ୍ୟ ସମାଗମେ ପୁଣ ବଳୀୟାନ,
ଦେଶବାସୀ ତହିଁ ଅତି ଯେ ସରଳ,
ଘାରି ନାହିଁ ତାଙ୍କୁ ବ୍ୟସନ ଗରଳ
ତୀକ୍ଷ୍ଣ ବୁଦ୍ଧି ସହ ହୃଦୟ ବିଶାଳ
ଭାରତେ ଦେଇଛି ପ୍ରତିଷ୍ଠା ଅଚଳ ।
ଶଙ୍କର ବଲ୍ଲଭ ଗୁରୁ ଆଦି ଯେତେ
ଦେଇଛନ୍ତି ମାନ ଆଧ୍ୟାତ୍ମ ଜଗତେ ।
ଭାଗ୍ୟକୁ ପୁଣ ଯେ ଗାନ୍ଧୀ ଚିନ୍ତାସ୍ରୋତ
ଲଭିଥିଲା ତେଜ ସେଠାରେ ବହୁତ,

ଉତ୍ତରୁ ବିନୋବା ଗ୍ରାମଦାନ ଜଳ
ଢାଳି ରାମେଶ୍ୱରେ ସେ ନୀର ବିମଳ
ଗ୍ରାମସ୍ୱରାଜ୍ୟ ବାରି ଭରି କୁମ୍ଭ ପୁଣ
ଉତ୍ତର ଦିଗକୁ ଯିବ ଲେଉଟିଣ ।
ତାମିଲେ ବୁଲନ୍ତେ ବାନ୍ଧି ଏହି ଆଶା
ଦୁଇ ଓଳି ଗ୍ରହି କଠିନ ତପସ୍ୟା
କଲେ ସତ୍ୟାଗ୍ରହ ସୌମ୍ୟ ସୌମ୍ୟତର
କ୍ଷୀଣୁଁ କ୍ଷୀଣ ହେଲା ବିନୋବା ଶରୀର ।
ଦେଖି ଗ୍ରାମଦାନ ଲଭିବା ପ୍ରସାର
ଲଭୁଛନ୍ତି ହୃଦେ ସନ୍ତୋଷ ଅପାର ।
ସେହି ପ୍ରଦେଶରୁ ଲେଖିଛନ୍ତି ଏବେ
ପୂର୍ବ ସ୍ୱାସ୍ଥ୍ୟ ଶୀଘ୍ର ଫେରି ସେ ପାଇବେ
ଗ୍ରାମଦାନ ସ୍ରୋତେ ବୁଡ଼ି ସେ ଉତ୍କଳେ
ଲଭିଥିଲେ ଯେଉଁ ସ୍ୱାସ୍ଥ୍ୟ ଅବହେଳେ ।
ଭାବୁଥିଲେ ଲୋକେ ଯହିଁ ଆଦିବାସୀ
ଅବା ଏକ ଜାତି ଯହିଁ ଅଧିବାସୀ
ଧନୀ ଯହିଁ ଅଳ୍ପ ଶିକ୍ଷିତ ବିରଳ
ନାହିଁ ପୁଣି ଜମି ସରସ ସଜଳ
ତହିଁ ଗ୍ରାମଦାନ ଅଟଇ ସୁଲଭ
"ଦାରିଦ୍ର୍ୟ-ବଣ୍ଟନ" ଭାବିବା ସମ୍ଭବ ।
ମାତ୍ର ଦେଖି ଦେଶେ ସଦ୍‌ଭାବର ଗତି
ବିଶ୍ୱାସେ ଫୁଲଇ ବିନୋବାଙ୍କ ଛାତି
ସାତତ୍ୟ ଯୋଗର ଅଟେ ଏହା ଫଳ
ସତତ ଭକ୍ତିରେ ରହିଲେ ଅଚଳ,

ଟଳଇ ଆସନ ପ୍ରଭୁଙ୍କର ହେଳେ
ଟେକ ସେ ରଖନ୍ତି ଭକ୍ତଙ୍କର ଭଲେ ।
ଅଧିକ ସମ୍ପଦ ଅଧିକ ଶିକ୍ଷିତ
ଅଛନ୍ତି ଦକ୍ଷିଣେ ଗ୍ରାମ ଶତଶତ
ନାନା ଜାତି ଲୋକେ ବାସ ସେହି ଗ୍ରାମେ
ତଥାପି ଲଗନ ଭୂଦାନ ଧରମେ
ତହିଁ ଗ୍ରାମଦାନେ ବିପୁଳ ଉତ୍ସାହ
ମନରୁ ତୁଟିଛି ଥିଲା ଯେ ସନ୍ଦେହ ।
ତଦୁପରି ପୁଣି ନୂଆ ଏକ ଛବି
ଉଦୟ ହୃଦୟେ ପୂର୍ଣ୍ଣ ଆଶାରବି
ଗ୍ରାମଦାନ ସହ ଗ୍ରାମ ସଂକଳ୍ପର
ଜନତା ପ୍ରାଣରେ ଉଠୁଛି ଲହର
ଗ୍ରାମେ ଗ୍ରାମେ ଲୋକେ ନେଉଛନ୍ତି ବ୍ରତ
ଗାନ୍ଧୀ ଗ୍ରାମରାଜ୍ୟ ସାଧନେ ନିରତ ।
ସତାବନେ କ୍ରାନ୍ତି ନିଶ୍ଚୟେ ଖେଳିବ
ବିନୋବାଙ୍କ ମନେ ଦୃଢ଼ ଏହି ଭାବ ।
ଭୂଦାନ ବୀଜରୁ ଗ୍ରାମଦାନ ଗଛ
ବଢ଼ିଲା ତୁରିତେ ବଢ଼ି ବହୁ ଉଚ୍ଚ
ଶାଖା ପ୍ରଶାଖା ଯେ କ୍ରମେ ମେଲିଗଲା
ନାନା ଜାତି ଫୁଲ ଫଳ ବିକଶିଲା
ମାଡ଼ି ଚଉଦିଗେ ଦୃଢ଼ ଚେରମୂଳ
ବ୍ୟାପି ସମାଜକୁ କଲା ଯେ ସବଳ ।
ମୁଣ୍ଡପିଛା ଜମି ଲୋକଙ୍କ ସମାନ
ସବୁ ପରିବାରେ ହୁଅନ୍ତେ ବଣ୍ଟନ

ସମତାର ରସ ସତ୍ତ୍ୱରେ ଖେଳଇ
ଗ୍ରାମଦାନ ଫଳେ ଏକତା ବଢ଼ଇ ।
ମାଟି ସହିତରେ ଜଳ ଖତ ନାନା
ନଥିଲେ ଯେସନେ ଫସଲ ଫଳେନା
ତେସନେ କେବଳ ଜମି ମିଳିଗଲେ
ସରବ ଉଦୟ ହେବ ନାହିଁ ଭଲେ ।
ଜମିକୁ ଉଠିଆ କରିବା କାରଣ
ଯେ ସବୁ ସାଧନ ଲୋଡ଼ା ହୁଏ ପୁଣ
ଲଙ୍ଗଳ ସହିତେ ବଳଦ ବିହନ
ଗ୍ରାମ ସଭ୍ୟମାନେ ଯୋଗାନ୍ତି ବହନ ।
କେବଳ ଗୃଷରେ ଘର ନ ଚଳଇ
ଏହି କଥା ପୁଣ କିଏ ନ ଜାଣଇ ?
ଗୃଷ ସଙ୍ଗେ ଲୋଡ଼ା ଗୃହଶିଳ୍ପ ନାନା
ଯୋଗାଇବାପାଇଁ ପୁଞ୍ଜି ଦାନାକନା ।
ଏସବୁ ଜୁଟିଲେ ରକ୍ଷା ନାହିଁ ପୁଣ
ପଡ଼ିଥାଏ ଯଦି ଘଳିଆ ବ୍ୟସନ
ନିଶାଦ୍ରବ୍ୟ ସଙ୍ଗେ ନାନା ଫଇଶନ
ବୁହାଇ ଦିଅଇ ଘରୁ ସବୁ ଅନ୍ନ ।
ବାକି ଯାହା ଥାଏ ଲଗିଲେ ବିବାଦ
ଘରୁ ଯାଇ ବଢ଼େ ପରର ସମ୍ପଦ ।
ଋଣକର ବୃଥା ସନମାନ ଆଶେ
ସାହୁକାରେ ବେକ ବଢ଼ାନ୍ତି ହରଷେ
କାଢ଼ିଆ ଖାଇଣ ଶସ୍ୟେ ଯେ ସୁଝନ୍ତି
ଶସ୍ତାରେ ଦେଇଣ ବେପାରି ପୋଷନ୍ତି ।

ସ୍ୱାସ୍ଥ୍ୟ ଶିକ୍ଷା ଆଦି ବେପାର କରଜ
କରିବ ବ୍ୟବସ୍ଥା ଗ୍ରାମସଭା ଆଜ ।
ଏସବୁ ବିଷୟରେ ହେଲା ଯେ ଯୋଜନା
ଗ୍ରାମଦାନ ପରେ "ନିର୍ମାଣ ରଚନା"
ଭୂଦାନ ଦେଖିଣ ପୁଣ୍ୟର ସଂଗ୍ରହ
ଜନ-ମନେ ଜାତ ସନ୍ତୋଷ ଅପାର
ପାଉଛୁ ସୁଯୋଗ ଭୂମି ଅଛୁ ଯା'ର
ନ ପାଏଟି ତାହା ଭୂମିହୀନ ନର
ଧରମ କାମରେ ଭାଗ କରୁ ପାଇଁ
ବିନୋବାଙ୍କ ପାଶେ କଲେ ଅଳି ଯାଇଁ ।
ଦେଖାଇଲେ ତହୁଁ ବିନୋବା ଯେ ବାଟ,
ସହଜେ ତରିବ ଧରମ ସଂକଟ ।
ସମାଜେ ସକଳେ ବନ୍ଧା ଛନ୍ଦାଛନ୍ଦି,
ମୋ'ର ତୋ'ର ଭାବ ମାୟା କାରସାଦି ।
ସଂପତ୍ତି ନିଜର ଦାବି କରେ କେହି
ଏକୁଟିଆ ହୋଇ ଗଢିଛୁ କି ସେହି ?
ସମାଜୁ ଲଭିଛୁ ଜନମ ହୋଇଣ,
ନାନା ପ୍ରକାରରେ ପୋଷଣ ରକ୍ଷଣ ।
ସମାଜରୁ ବିଦ୍ୟା କରିଛୁ ଅର୍ଜନ
ସାଧାରଣ ଧନେ ଚଳେ ବିଦ୍ୟାଦାନ
ଚାକିରି କରୁଛୁ ସମାଜ ପାଖରେ
ବେପାରି ତଳଇ ଗରାଖ କୃପାରେ
କଚିରି ଚଳୁଛୁ ପକ୍ଷଙ୍କ କରୁଣା
ଡାକ୍ତରୀ କରୁଛୁ ରୋଗୀ ହେଲେ ବଣା ।

ବିଦ୍ୟା ବୁଦ୍ଧି ସବୁ ଯା' ପାଖେ ଜମଇ
ବଞ୍ଚୁଛି ଯା' କିଛି ହେଉ ନ୍ୟାସୀ ହୋଇ ।
ତେଣୁ ଯାହା ପାଖେ ଯା' କିଛି ସଂପତ୍ତି
ଦେଉ ସେ ସେଥିରୁ ଏକଭାଗ କାଟି ।
ଏସନେ ଯା'କିଛି ଦାନ ଯେ ମିଳିବ
"ସଂପତ୍ତିଦାନ"ର ଆଖ୍ୟା ତା' ବହିବ ।
ଶ୍ରମ କରିବାରେ ଯା'ର ଶକ୍ତି ଅଛି
ଦେଉ ତହୁଁ ଭାଗ ସମାଜକୁ କିଛି ।
ବିଦ୍ୟାବୁଦ୍ଧି ମୂଳ ଯାହା ପାଖେ ପୁଣ
ଦେଲେ ଦାନ ତହୁଁ "ବୁଦ୍ଧିଦାନ" ଜାଣ ।
ଏସବୁ ଦାନରେ ରହିବ ବିଧାନ
ଗୃହୀ ଭଳି ଅର୍ଥ ସଂଗ୍ରହ ବାରଣ ।
ଦାନ ରହିଥିବ ଦାତାଙ୍କ ପାଖରେ
କରି ସେ ଖରଚ ଭୂଦାନ ଯଜ୍ଞରେ
ହିସାବ ସେ ଦେବ ସମାଜର ପାଖେ
ଧର୍ମର ପୂରଣ ଜନତା ସନ୍ତୋଷେ ।
କହିଲେଣି କେହୁ ଠକିବେ ସେମାନେ
ସତ୍ୟଯୁଗ ଏହା ରଖିଥାଅ ମନେ ।
ଏସନ ଜନମ ନାନା ଦାନ ଧର୍ମ
ଭୂଦାନ ଯଜ୍ଞରୁ ସନୁର ଉଦ୍‌ଗମ ।
ସଂପତ୍ତି ଶ୍ରମ ଯେ ବିଦ୍ୟା ବୁଦ୍ଧି ଦାନ
ଏକଇ ବୃକ୍ଷରୁ ନାନା ଶାଖାମାନ ।
ସମାଜେ ଯା' କିଛି ଦେଖୁଛ ଉତ୍ପନ୍ନ
ଅଟନ୍ତି ମାଲିକ ଏକା ଭଗବାନ ।

———————

## —ସତାବନ କଣ୍ଟ—

ଭୂଦାନ ଯଜ୍ଞର ଆରମ୍ଭ ଦିନରୁ
ଉଠୁଥିଲା ମନେ ସନ୍ଦେହ ଯେ ଗୁରୁ
ଭୂମି ପାଞ୍ଚ କୋଟି ଏକର ସଂଗ୍ରହ
ମାଗିଲେ ଲାଗିବ ବର୍ଷ ଶହ ଶହ ।
କହୁଥିଲେ ସେଥି ଶୁଣି ଏ ବଚନ,
"କରୁଥିଲେ ଇଚ୍ଛା ପ୍ରଭୁ ଜନାର୍ଦ୍ଦନ
ପୂର୍ଣ୍ଣ ହେବାପାଏ ବାସନା ତାଙ୍କର
ବଢ଼ାଇ ଦେବେ ସେ ଆୟୁଷ ମୋହର,
ନାହିଁ ତ ପ୍ରେରଣା ଦେବେ ସେ ଭାରତ
ଲକ୍ଷ ଲକ୍ଷ ପ୍ରାଣ କରିବେ ଜାଗ୍ରତ ।"
ଫିଠାଇ କହିଲେ ବିନୋବା ଯେ ପୁଣ
"ସତାବନେ ହେବ ଯଜ୍ଞ ଉଦ୍‌ଯାପନ
ଲାଗିବ ନାହିଁ ଯେ ପାଞ୍ଚଶ' ପର୍ବଣ
ଏକା ବରଷକେ ହୋଇବ ତା' ଶେଷ ।"
ଭାରତ ଜୀବନେ ସନ ସତାବନ
ଘଟାଇଛି କାଳେ ବିପ୍ଳବ ମହାନ ।
ସତରଶ' ସତାବନେ ମନେ ଜାଣ
ବିଦେଶୀ ବିରୁଦ୍ଧେ ସ୍ୱାଧୀନତା ରଣ
ପଳାସି କ୍ଷେତ୍ରରେ ହେଲା ଅବସାନ
ନ ହେଉ ପଛକେ ଉଦ୍ଦେଶ୍ୟ ସାଧନ ।
ବିଦେଶୀ କବଳେ ରହି ଶହେ ବର୍ଷ
ତେଜଗଣ ଉଠିଲେ ଆରେକ ସଂଘର୍ଷ

ଅଠର ଶହର ସତାବନେ ପୁଣ
ସିପାହୀ ବିଦ୍ରୋହ ଉଠିଥିଲା ଜାଣ ।
ସ୍ୱରାଜ୍ୟ ସର୍ବୋଦୟର ସ୍ଥାପନ
ନ ହେବ କାହିଁକି ସତାବନେ ପୁଣ ?”
କ୍ରତୁଠାରୁ ଯଜ୍ଞ ଯଜ୍ଞଠାରୁ ସ୍ୱଧା
ସ୍ୱଭାବେ ଜନମେ ଏଥି ନାହିଁ ଦ୍ୱିଧା
ସ୍ୱଧାର ମରମ ତୀବ୍ର ଆତ୍ମଶକ୍ତି
ଜନତା ଭିତରେ ଫୁଟିବ ଝଟିତି ।
ସଂଗ୍ରହ ଏକର ଭୂମି ପାଞ୍ଚ କୋଟି
ହୋଇପାରେ ତାହା ଦିନକେ ଏକାଠି,
ହୁଅଇ ଦିଆଲି ପାଳନ ଯେସନ
ଅବା ବରଷରେ ପରବ ପାଳନ ।
ସଂଗ୍ରହଣ ଲାଗି ନାହିଁ ଅନୁଷ୍ଠାନ
ନ ଥାଏ ପ୍ରଭୁର ନାହିଁ ପ୍ରବର୍ତ୍ତନ
ଜନତା ରଖନ୍ତି ମନେ ତଥିବାରେ
ଜ୍ଞାନ ଥାଏ ତାଙ୍କ ନିଜ ଧରମର ।
ବାଣ୍ଟିଖିଆ ଧର୍ମ ହେଜିଲେ ତେସନ
ନ ରହିବେ କେବେ ଗ୍ରାମେ ଭୂମିହୀନ
ଶିକ୍ଷିଥିଲେ ସୁଦ୍ଧା ନିଜେ ଛଣ୍ଡ୍ରୋକନା
ଲଙ୍ଗଳାକୁ ଦାନେ ନ ହେବେ ବିମନା ।
କେବେ ନ ପଡ଼ିବ ପଛେ ଧର୍ମକାମ
ଧର୍ମେ ହେଳାକଲେ ଲାଗିବ ଶରମ ।

ରାଷ୍ଟ୍ରୀୟ ସଂକଳ୍ପ ସାଧନେ ଲାଗନ୍ତ
ନିର୍ଦ୍ଦିଷ୍ଟ କରିଲେ ଯନ୍ତ୍ରର ପୂରଣ ।

———

## —ମରୁତ—

କହନ୍ତ ବିନୋବା ବୁଝାଇ ସକଳେ
ହେଜିଲେ ସୁଧୀରେ ଶଙ୍କା ଯିବ ହେଲେ,
"ଦେଖିଣ ଆଜ ମୁଁ ବିଶ୍ୱ ସ୍ଥିତି ଗତି
ବଢ଼ୁଛି ବିଶ୍ୱାସ ମୋର ନିତି ନିତି ।
ଗଢ଼ିଲଣି ଯେତେ ମାରଣାସ୍ତ୍ର ବିଶ୍ୱ
ଭସ୍ମାସୁର ଭଳି କ୍ଷଣକେ ବିନାଶ
ମନେ ହେଉଥାଏ ସତେ ମହାରଣ
ଜଳିବ ଯେ ଜଟି ଅବା ପରୀକ୍ଷଣ,
ମାତ୍ର ସର୍ବନାଶ ଭୟର କାରଣ
କେବେ ନ ଲଗାନ୍ତ ଅସ୍ତ୍ରେ ହାତ ପୁଣ ।
ସାନ ସାନ ମଧ୍ୟେ ଲାଗେ ହାଣକାଟ
ବଡ଼ ବଡ଼ ତାଙ୍କୁ କରନ୍ତ ଅକାଠ
କହନ୍ତ ସରବେ ମିଳାଇଣ ସ୍ୱର
କଥାବାର୍ତ୍ତା କରି ସମାଧାନ କର ।
ଝେଲୁଛୁ ପବନେ ଶାନ୍ତିପାଇଁ ଗତି
ବଢ଼ଇ ଜଗତେ ସର୍ବୋଦୟ ପ୍ରୀତି ।
ବେଦରେ କହୁଛି ପ୍ରବାହ ମରୁତ
ବେଳେ ବେଳେ ବନ୍ଧ ଖୋଲଇ ଜଗତ ।

ନ ଶୁଣି ନ ଜାଣି ଶତ୍ରା ପରସ୍ପର
ଏକଇ ପ୍ରକାରେ କରନ୍ତି ବଗୃର ।
ଭାରତ ପଶ୍ଚଣେ ଶାନ୍ତିବ୍ୟାକୁଳତା
ପ୍ରଭାବିତ କରେ ଅନ୍ୟଦେଶ ଚିନ୍ତା
ଏମନ୍ତ ନୁହଁଇ ମନୁତର ଗତି
ସ୍ୱତନ୍ତ୍ର ରୂପରେ ହୁଅଇ ପ୍ରଗତି
ଏକଇ ଭାବନା ଏକଇ ବଗୃର
ହୁଏ ଗୃହଅଡ଼େ ମନୁତ ଫଗୃର ।
ସତାବନ ହେବ ଶାନ୍ତିର ବରଷ
ସର୍ବୋଦୟ ଭାବ ହୋଇବ ପ୍ରକାଶ ।
ଭୂମିଦାନ ତହିଁ ସୁଦୃଢ଼ ସୋପାନ
ଭୂମିକ୍ରାନ୍ତି ଫଳେ ହୋଇବ ସ୍ଥାପନ ।



## —କୁଣ୍ଡଛେଦେ ବୈଶ୍ୱାନର—

ସ୍ୱଧା ଜନ୍ମ ପାଇଁ କଲେ ଯେ ବିଗୃର
ଦଶଇ ସାଧନ କେତେ ଯେ ପ୍ରକାର ।
ହୋମାଗ୍ନି ସୃଜିବ ତେଜ ବୈଶ୍ୱାନର
ସେଥିପାଇଁ ଲୋଡ଼ା ସାଧନ କଠୋର ।
ପ୍ରଥମ ସୋପାନ ଶୁଦ୍ଧ ସତ୍ୟାଗ୍ରହ
ବଢ଼ିବ ଯା' ଫଳେ ଜନତା ଆଗ୍ରହ ।
"ନୀଧି" ଅଶ୍ରା ଛାଡ଼ି ଭାଙ୍ଗି ଅନୁଷ୍ଠାନ
ଲୋକଙ୍କ ଉପରେ ନିର୍ଭର ବନ୍ଧନ ।

ସଞ୍ଚିତ ପାଣ୍ଠି ଯେ ନିଧି ନାମ ବହେ
ଯେମନ୍ତେ ସ୍ମୃତି ପାଇଁ ଗାନ୍ଧୀନିଧି ରହେ ।
କୁଣ୍ଡଘଣ୍ଡ ଯଦି ନିଆଁ ନ ଖେଳିବ
କେମନ୍ତେ ପ୍ରକଟ ବୈଶ୍ୱାନର ହେବ ?
ନିଧିଚ୍ଛେଦ ଫଳେ ସ୍ୱଧା ଯେ ତେଜିବ
ଜନତା ଆଧାର ତକ୍ଷଣେ ବଢ଼ିବ ।
ଅନୁଷ୍ଠାନ ଗଢ଼ି ଚଳାଇଲେ କାମ
ତେସନ ରଚନା ଲଭେ ସଂସ୍ଥା ନାମ ।
ସେହି ସଂସ୍ଥା ଲୋପେ ବିଶ୍ୱାସ ତେଜିବ
ବିଶ୍ୱାସ ତେଜିଲେ ଶକ୍ତି ପ୍ରକାଶିବ ।
ଆନ ଯେ ଉପମା ମିଳଇଟି ଉତ୍ସ
ଶିଶୁକାଳେ ଲୋଡ଼େ ବୃକ୍ଷ ବାଡ଼ ଆଶ୍ରା,
ବଢ଼ିଲେ ସେ ବୃକ୍ଷ ବାଡ଼ ବାଧା ଦିଏ
ଅବାଧ ବିକାଶେ ଘେର ଭଙ୍ଗାଯାଏ ।”
ଦେଇଛନ୍ତି ଏବେ ଅଭୟ ବାରତା,
“ଜନତା! ସଦାହିଁ ବିପ୍ଳବ କରତା
ଦେଇଛି ଯେ ଶକ୍ତି ଲକ୍ଷ ଲକ୍ଷ ହାତେ
ସଂପତ୍ତି ଭୂଦାନ ଗ୍ରାମଦାନ ଯେତେ
ମାଗ ବା ନ ମାଗ ଆନନ୍ଦେ ଦେଲଣି
ଦେବ ସେ ନିଶ୍ଚୟ ମାଗିଲେଟି ପୁଣି ।”
କୋଟି କୋଟି ଟଙ୍କା କରଣ ଏକାଠି
ଗାନ୍ଧୀସ୍ମୃତି ପାଇଁ ଗଢ଼ିଥିଲେ ପାଣ୍ଠି

ସେହି ଗାନ୍ଧୀନିଧି ସଚେତ ଅଗ୍ରସ୍ତ
ଚଳୁଥିଲା ଏବେ କାମ ସର୍ବୋଦୟ ।
ଭୂଦାନ ସମିତି ପ୍ରଦେଶେ ଗଢ଼ିଣ
ଜିଲ୍ଲା ଗ୍ରାମେ ମୁଣି କରି ସଂଗଠନ
ଲଗାଇ ତହିଁରେ କର୍ମୀ ଶତ ଶତ
ଯନ୍ତ୍ରର ଚାଳନା ହେଉଥିଲା ନିତ୍ୟ ।
ସଂଚିତ ପାଣ୍ଠିରୁ ନେବା ହେଲା ମନା
ପରନ୍ତୁ ଏବେ ହେବ କି ରଚନା!
ଭାଙ୍ଗିଗଲା ସବୁ ସମିତି ଗଠନ
ଚାଳନା କାମର ହେବ ଯେ କେସନ ?
ଉଦ୍ଦେଶ୍ୟ ଯେବେଠି ବଢ଼ୁ ଲୋକଶକ୍ତି
ଜନ ଆଧାରିତ ଆନ୍ଦୋଳନ ଗତି
ପରୋକ୍ଷେ ଆଧାର ସଂଚିତ ଉପର
ରଖ ଯେ ପ୍ରତ୍ୟକ୍ଷେ ଜନତା ନିର୍ଭର ।
ତହୁଁ ଅଚୁ ଯେବେ ହେବ ଯେ ବିପ୍ଳବ
ଲୋକଙ୍କ ଉପରେ ଦାୟିତ୍ୱ ପଡ଼ିବ ।
ଗ୍ରାମେ ଗ୍ରାମେ ହେବ ମୂଳ ସଂଗଠନ
ତହୁଁ ଯେ ଉଠିବ ଉପର ସୋପାନ
ବିନୋବା ଯେ ଥିବେ ପରାମର୍ଶ ଥାନ
ତଳେ ଯେ ଚାଲିବ ସବୁ ଆନ୍ଦୋଳନ
ତହିଁ ଲେ ଜନତା କର୍ମୀ ନିୟୋଜନ
ଗଢ଼ି ଯେ ପାରନ୍ତି ଗ୍ରାମ ସଭାମାନ ।
ଦାତା ଗ୍ରହୀତା ଯେ ମିଳିଣ ସରବେ
ଗ୍ରାମ ସଭା ଗଢ଼ି କାମ ଚଳାଇବେ

ଗଢ଼ିବେ ଯେହ୍ନି ଗ୍ରାମ ସଂଗଠନ
ବୋଲାଇବେ ସେହ୍ନ ସତ୍ୟାଗ୍ରହ ସୈନ୍ୟ ।
ସତ୍ୟ ଅହିଂସାରେ ଚଳିବ ସମର
ଅହିଂସାରେ ଧ୍ୟାନ ରଖିବେ ନିକର ।
ନିଧି ଅସ୍ତ୍ର ଛଡ଼ି କାଟିବେ ଦଉଡ଼ି
ମନୁ ଶଙ୍କା ଭୟ ପଡ଼ିବ ଯେ ଛାଡ଼ି ।
ଜନତା ହାତରେ କଲେ ସମର୍ପଣ
ପ୍ରଭୁ ଦଅଇବେ ଭରଣ ପୋଷଣ,
ମଣିବେ ସର୍ବେ ଏକ ପରିବାର
ସ୍ନେହର ବନ୍ଧନେ ସାହା ପରସ୍ପର ।"

× × ×

ଦିଅନ୍ତି ସୂଚନା ବିନୋବା କେତୋଟି
ମନେ ହେଜି ବାଛ ତହୁଁ ଏକଗୋଟି,
"ବେଶୀ ପରିବାର ଯାଙ୍କର ଅଛଇ
ଜଣକୁ ଛାଡ଼ନ୍ତୁ ଆନ୍ଦୋଳନ ପାଇଁ ।
ମିଳେ ମିଳି ଅବା ଗଢ଼ନ୍ତୁ ମଣ୍ଡଳୀ
ନିଅନ୍ତୁ ଗୋଟିଏ କର୍ମୀଙ୍କୁ ସମ୍ଭାଳି ।
କିମ୍ବା ଅନୁଷ୍ଠାନ ଯେତେକ ଦେଶରେ
ନିଯୁକ୍ତ ଗଠନମୂଳକ ସେବାରେ
ଭୂଦାନ ଯଜ୍ଞର ନୂତନ ଜୀବନ
ମନରେ ରଖନ୍ତୁ ସେ କଥା ମହାନ
ନିଜ କର୍ମ ସାରି ଉଠାନ୍ତୁ ଦାୟିତ୍ୱ
ଭୂଦାନ କରମ କରି କାହୁଁ ନିତ୍ୟ ।

ଅଥବା ଦେଶର ଶିକ୍ଷକେ ବହନ
ସର୍ବୋଦୟ ଶାସ୍ତ୍ର କର ଅଧ୍ୟୟନ
ଛାତ୍ରଙ୍କୁ କରାଇ ସେଥିରେ ପ୍ରବୀଣ
ଦିଅନ୍ତୁ ତାହାଙ୍କୁ ନବୀନ ଚେତନ
ବାଛି ଛାତ୍ର ଥୋକେ କର୍ମୀ ହେବା ପାଇଁ
ଭୂଦାନ ଧ୍ରୁବରେ ଦିଅନ୍ତୁ ଲଗାଇ ।”
ପୁଣି ସେ ସୂଚନା କରନ୍ତି ଆରେକ
ସହରେ ରହିବ ଆନ୍ଦୋଳନ ଠିକ
“ବ୍ରଜକାନ୍ତ ଷେତେ ଯେତେ ଅନୁଷ୍ଠାନ
ଭୂଦାନେ କରନ୍ତି ନିଜ ସମର୍ଥନ
ଆପଣା କର୍ମୀରୁ ଥୋକଙ୍କୁ ବାଛିଣ
ଭୂଦାନ କରମେ ଲଗାନ୍ତୁ ବହନ ।”
ପଞ୍ଚମ ଯୋଜନା ସୂଚାନ୍ତି ସେ ପୁଣ
“ଗ୍ରାମ ଗ୍ରାମାନ୍ତରୁ ମିଳୁ ଶସ୍ୟଦାନ
ଆପଣା ଫସଲୁ ଦିଅନ୍ତୁ ସେ ବାଣ୍ଟି
ପୂରିବ ଜଣକ କର୍ମୀର କଅଣ୍ଟି ।
ପଚିଶ ଟଙ୍କାରେ ଅଭାବ ମୋଚନ
ହେବଟି ଯାହାର ସେବକ ତେସନ
ଚଳିବ ସେ ଦଶ ଗ୍ରାମେ ଅଙ୍ଗୀକରି
ପଡ଼ିବ ଗ୍ରାମକେ ପାଞ୍ଚ ଟଙ୍କା କରି ।”
“ବ୍ରଜକାନ୍ତ ଗୋଲେ ନ ପଶିବ ସେହି
ନିର୍ବାଚନ ଦ୍ୱନ୍ଦେ ମନ ଦେବ ନାହିଁ
ଅହିଂସା ଅସ୍ତେୟ ଅପରିଗ୍ରହ ପୁଣ
ସତ୍ୟକୁ ଆଦରି ଜୀବନ ଯାପନ,

ନିଜର ଅଭାବ ଥିବ ଅତି ଅଳ୍ପ
କରୁଥିବ ସଦା ନିଷ୍କାମ ସଂକଳ୍ପ
ଲୋକମାଝ ରଖି ଆଦର୍ଶ ସତତ
କରୁଥିବ ସଦା ସେବା ଲୋକହିତ,
ଅଡୁଆ ପଡ଼ିଲେ ଲୋକଙ୍କର କେବେ
ନିର୍ଭୟେ ତା'ପାଖେ ସବୁ କହୁଥିବେ ।"
ଆବର ଯୋଜନା କହୁଛନ୍ତି ପୁଣି
"ଏବେ ପାଞ୍ଚ ଲକ୍ଷୁ ବେଶୀ ଦାତାଗଣ
ଦେଇଛନ୍ତି ଦାନ ଏହିଯଜ୍ଞେ ପୁଣି
ଆପଣା ମଧ୍ୟରେ ସଂଘ ଯେ ଗଢ଼ିଣ,
ଅନ୍ୟ ପାଖେ ଯାଇ ମାଗନ୍ତୁ ସେ ଦାନ
ଚାଲିବ ପ୍ରବାହେ ଏହି ଆନ୍ଦୋଳନ ।
ଅଭାବ ପୂରଣେ ନ ରଖ ସନ୍ଦେହ
ପୂରିଣ ରହିଛି ଦେଶହୃଦେ ସ୍ନେହ
ପୋଷୁଛନ୍ତି ଯେବେ ଭିଖାରିଙ୍କୁ ଥୋକେ
ନ ଦେବେ କାହିଁକି କାମ କଲା ଲୋକେ ?"
ଏଣିକି କି କାମ ହେବ ପଚାରନ୍ତେ
ବିନୋବା କହନ୍ତି ସରବେ ଏମନ୍ତେ
"ଆନ୍ଦୋଳନ ଯେବେ ଲୋକେ ମୁଣ୍ଡାଇଲେ
କାହାରି ଅପେକ୍ଷା କର ନାହିଁ ଭଲେ
ବୁଝି ବିଚାରିଣ ଆପଣା ଗ୍ରାମରେ
କରି ପରାମର୍ଶ ସାହି ପଡ଼ିଶାରେ
ପଚାରି ପାରନ୍ତି ସେବକେ ବା କେବେ
ନ ରହି ବସନ୍ତୁ ତାଙ୍କ ବାଟ ଲବେ ।

ମନରୁ ହୀନତା ଛୁଟାଅ ବନ୍ଧନ
ବଳହୀନ ଭାବ ମନକୁ ନ ଅଣ ।
ବିଷ୍ଣୁ ଯେ ଗରୁଡ଼େ କଲେକ ବାହନ
ବଳଦ ବାହନ କଲେ ପଞ୍ଚାନନ
ବଣର ସିଂହକୁ ମାଦୁର୍ଗା ବାଛିଲେ
କାହାକୁ ବାଛିବେ ଗଣେଶ ଭାବିଲେ ।
କାମ ତାହାଙ୍କର ଜ୍ଞାନର ପ୍ରଗ୍ଭର
ଆବର ଅଛଇ ବିଦ୍ୟାର ପ୍ରସାର
ପ୍ରବେଶ ତାଙ୍କର ଲୋଡ଼ା ରନ୍ଧ୍ରେ ରନ୍ଧ୍ରେ
ତେଣୁ ସେ ବାଛିଲେ ମୂଷା ଭଳି କ୍ଷୁଦ୍ରେ ।
ବଡ଼ ବାହନ ଯେ ଦଲ୍ଲୀ କଟକରେ
ବଡ଼ ବଡ଼ କାମେ ଲାଗିବେ ତୋଷରେ ।
ଯେଉଁଠାରେ ସିଂହ ବା ବଳଦ ଗରୁଡ଼
ପଶି ନ ପାରନ୍ତି ଥାଇଁ ଦେହ ବଡ଼
ସେଠାରେ ମୂଷିକ ସହଜେ ଗଳିବେ
ସାନ ସାନ କର୍ମୀ ତେସନ ହୋଇବେ ।
ସଂଗ୍ରହ କରନ୍ତୁ ନାନା ରୂପ ଦାନ
ବୁଝିଁ ଦଗୃହଣ ଲୋକେ ଦେବେ ଦାନ
ଯେ ବାଟ ବିନ୍ଧିଷ୍ଟ ଭୂମି ବଣ୍ଟନର
ତେସନ ବାଣ୍ଟିଣ ଦଅ ସବୁ ଶୀଘ୍ର ।
ମିଳିଣ ଚରବେ ଦାତା ଯେ ଗ୍ରହୀତା
ହୁଅନ୍ତୁ ସକଳେ ଦାନ ସଂଗ୍ରହୀତା
ନାହିଁ ଜବର୍ଦସ୍ତି ନାହିଁ ବଳାତ୍କାର
ନ ଦଅ ଧମକ ନ ଦେଖାଅ ଡର

ଧର୍ମ ଦରଶନ୍ତୁ କାନ୍ତ ଦରଶନେ
ସରବେ ସ୍ୱେଚ୍ଛାରେ ଦେବେ ସ୍ୱଚ୍ଛମନେ ।
ଦାତା ବା ଅଦାତା ସକଳଂକ ପ୍ରତ
ରଖିବ ମନରେ ସଦା ସମପ୍ରୀତ ।
ଆଜ ଯେ ଅଦାତା କାଲ ଦେଇପାରେ
ଭୁଲ ନାହିଁ ଦେବା ସମ୍ମାନ ତାହାରେ,
ସରବ ଘଟରେ ପ୍ରଭୁ ନାରାୟଣ
ଦଅନ୍ତ ସେ ଦାନ ହୋଇ ସୁପ୍ରସନ୍ନ ।
ଭୁଲନା ଶିବର ପଦଯାତ୍ରା କଥା
ଶୁଣାଅ ସରବେ ସମ୍ମିଳନୀ ବାର୍ତ୍ତା ।
ଏହ ଧର୍ମପୁଞ୍ଜେ ଗୃଲକ ବନୋବା
ତେଣୁ ତାଙ୍କ କଥା ସରବେ ଶୁଣିବା ।
ତାଙ୍କର ବାରତା ପ୍ରଚୃର ଉଦ୍ଦେଶ୍ୟେ
ହେଉଛି ପ୍ରକାଶ କେତେ ଲେଖା ଦେଶେ ।
ଯେସନ ବାହାରେ 'ଗ୍ରାମସେବକ'ରେ
ତେସନ ଛପଇ ବଭନ୍ନ ଭାଷାରେ ।
ତନ ଲକ୍ଷ ଗ୍ରାମେ ଯାଉ ତା ପଦ୍ୱଞ୍ଚ
ବନୋବାଙ୍କ ମନେ ବାସନା ରହୁଛି ।
ଏସନ ବ୍ୟବସ୍ଥା କରାଅ ଉଚତ
ଶୁଣଂତୁ ତା' ଗ୍ରାମେ ହୋଇ ଏକତ୍ରିତ ।
ସଂଗ୍ରହ ବଣ୍ଟନ ନର୍ମାଣ ଯେ ପୁଣ
ସରବ ବଷୟେ କରବ ଚନ୍ତନ
ସତ୍ୟ ଅହଂସାର ବଧାନ ମନନ
ଏ ସବୁ କାମରେ କର ଅବଧାନ

ସତତ ଚିତ୍ତରେ ଜାଗେଲେ ଗହନ
ବଢ଼େ ଆନ୍ଦୋଳନ କାନ୍ତି ଦରଶନ ।

—————

## —ଭୂଦାନେ ସତ୍ୟାଗ୍ରହ—

ଥିଲାଟି ଯେସନ ସତ୍ୟାଗ୍ରହ ରୀତି
ପାଳୁଥିଲେଁ ଗାନ୍ଧୀ ଯୁଗେ ଯେଉଁ ନୀତି
ଏବେ ତାକୁ ଯଦି ଯିବୁ ଅନୁସରି
ପ୍ରମାଦ ଘଟିବ ସେ ବାଟକୁ ଧରି ।
ଏବେ ଲୋଡ଼ା ପରି ସତ୍ୟାଗ୍ରହ ଏକ
ଅଧିକ ସୁସ୍ପଷ୍ଟ ପୁଣି ବିଧାୟକ ।
ଗଢ଼ିବାର ବିଧି ଥାଏ ଯେଉଁଥିରେ
"ବିଧାୟକ" ନାମ ସତ୍ୟାଗ୍ରହ ଧରେ ।
ଗାନ୍ଧୀ କହୁଥିଲେ ପରି ପୁଣ ପୁଣ
ସତ୍ୟାଗ୍ରହ ଶାସ୍ତ୍ର ଲେଖିବା କଠିନ
ଧୀରେ ଧୀରେ ତାହା ହେଉଛି ପ୍ରକାଶ
ଆମେ ହିଁ କରିବା ତାହାର ବିକାଶ ।
ନ କର ତେସନ ମାତିଗଲେ ଆଗ
କରିବାରେ ସେହି ପୁରୁଣା ପ୍ରୟୋଗ
ଅକାଳେ କୁଫଳ ଫଳିବଟି ହେଲେ
ରହ ସାବଧାନ ଏଥକୁ ଯେ ଭଲେ ।
ବିଦେଶୀ ହାତର ସ୍ୱରାଜ୍ୟ ହାସଲେ
"ନକାର" ରୂପରେ ସତ୍ୟାଗ୍ରହ କଲେ ।

ପାପର ବିନାଶ ଆଦର୍ଶ ରଖିଲେ
ପାପ ତଡ଼ିବାରେ ନକାର ଭଜିଲେ
ନାସ୍ତିଭାବ ଯହିଁ ସବୁ ଉପାୟରେ
ନକାର ନାମଟି ସତ୍ୟାଗ୍ରହ ଧରେ ।
ଏବେ ଯେ ଲୋକଙ୍କ ନୂଆ କଲେବର
କରିବାକୁ ହେବ ଯେତେ ଶୀଘ୍ର ପାର ।
କହୁଥିଲୁଁ ଆମେ ବିଦେଶୀ ସର୍କାରେ
ସୁଧାରିବୁଁ ଅବା ସାରିଦେବୁଁ ତୋରେ ।
କହୁଥିଲୁଁ ପୁଣ ଭାରତକୁ ଛାଡ଼
ଏବେ କି ପାରିବୁଁ କହି ସେ ପ୍ରକାର ?
ଆମରି ଦେଶର ବଣିକ ବେପାରୀ
ଭୂମି ସମ୍ପତ୍ତିର ଯେତେ ଅଧିକାରୀ ।
ଆମରି ସେ ଲୋକ ଆମରି ଦେଶରେ
ଛାଡ଼ିଣ ଏ ଦେଶ ଯିବେ ସେ କୁଆଡ଼େ ?
ଯେମନ୍ତେ ରହିବା ମିଳିଣ ଏକାଠି
କାଢ଼ିବା ତାହାର ଶୀଘ୍ର ବାଟ ଗୋଟି ।
ଏପରି ସ୍ଥିତିରେ "ଭାବାତ୍ମକ" ରୂପେ
ପ୍ରକାଶ ହୋଇବ ସତ୍ୟାଗ୍ରହ ଆପେ ।
ରଚିବାକୁ ହେବ ଯେବେ ନୂଆକରି
"ଭାବାତ୍ମକ" ନାମ ସତ୍ୟାଗ୍ରହ ଧରି ।
ଭ୍ରମରେ ଚଳଇ ଏବେ ଏ ପ୍ରବାହ
'ତାହା ବିରୁଦ୍ଧରେ କର ସତ୍ୟାଗ୍ରହ ।'
ମାତ୍ର ସତ୍ୟାଗ୍ରହେ ବିରୋଧ ନ ଥାଏ
କାହାର ସହିତେ ତାହା କରାଯାଏ

କାହାର ପାଖରେ ଅବା କରପାର
ବୋଲନ୍ତି ତାହାକୁ ସତ୍ୟାଗ୍ରହ ସାର ।
ବୁଝାଇ ଆପଣା କଥା ଯେ କହିବ
ଯେପରି ପରର ହୃଦ ବୋଧ ହେବ
ମୂଳମନ୍ତ୍ର ଅଟେ ସତ୍ୟାଗ୍ରହେ ଏହା
ଆପଣା ହୃଦୟେ ଜାଣିଥାଅ ତାହା ।
ଥିବ ଯଦ ଦୋଷ ଆପଣା ବଗ୍ରହରେ
ପ୍ରକୃତ ପନ୍ଥା ଯେ ସୁଧାରି ନେବାରେ ।
ଅବା ପ୍ରତିପକ୍ଷ କେବେ ମୋହବଶେ
ତମକୁ ନ ଦଏ ସ୍ଥାନ ନଜ ପାଶେ
ଗଢ଼ିଣ ମନରେ ସ୍ୱାରଥ କଳ୍ପନା
କ୍ରୋଧବଶ ହୋଇ ଦଏ କର ମନା ।
ଆସିଯାଏ ଦୁଃଖ ସହିବାର ବେଳ
ସତ୍ୟ ଅହିଂସାର ଚରମ ସମ୍ବଳ ।
ବିପ୍ଳବ ହୁଅଇ ବଗ୍ରହୁ ଜନମ
ନଜର ବଗ୍ରହ ଶୁଣାଅ ଧରମ ।
ଆଦ ଅନ୍ତ ମଝି ସର୍ବଦା ବଗ୍ରହ
ସତ୍ୟାଗ୍ରହେ ଏହା ନତ୍ୟ ଧର୍ମ ସାର ।
ଆଦ୍ୟରେ ବଗ୍ରହ ମଧ୍ୟରେ ତପସ୍ୟା
ଶେଷରେ ବଗ୍ରହ ବାଛତି ଅହିଂସା
ସତ୍ୟାଗ୍ରହେ ଏହା ଆପଦ ଧରମ
ମନେ ରଖି ଏହା କରିଯାଅ କର୍ମ ।"

× × ×

“ବଗୁଡ଼ିରେ ମୁହିଁ ପାଦଯାନା ମୋର
ଅଟେ ସତ୍ୟାଗ୍ରହ ଏକ ଯେ ପ୍ରକାର ।
ଭାବୁଛନ୍ତି ଲୋକେ ନ ହେଲେ ପୂରଣ
ତୀବ୍ରୁଁ ତୀବ୍ରତର ହୋଇବ ଯେ ରଣ ।
ଯଥାର୍ଥେ ଏସନ ବଗୁରର ଧାରା
ଭ୍ରମପୂର୍ଣ୍ଣ ବୋଲି ଜାଣିରଖ ତ୍ୱରା ।
ଆମ ସତ୍ୟାଗ୍ରହ ସୌମ୍ୟୁଁ ସୌମ୍ୟତର
ଶେଷେ ସୌମ୍ୟତମ ଧରିବ ଆକାର ।
ଯାହାକୁ ଦେଖିଣ ଭୟ ନ ଲାଗଇ
ସୌମ୍ୟ ବୋଲି ତାକୁ ଯଥାର୍ଥ କୁହଇ ।
ସୌମ୍ୟଭାବ ଦେଖି ଉପୁଜଇ ପ୍ରେମ
ହୃଦ ତରଳାଇ ସିଦ୍ଧ ହୁଏ କାମ,
ସତ୍ୟାଗ୍ରହେ ଯଦି ଇଚ୍ଛ ସଫଳତା
ବଢ଼ାଅ ଚିନ୍ତନ ବଢ଼ାଅ ସୌମ୍ୟତା ।
ଦାତା ହୋଇ ତ୍ୟାଗ କରିଛନ୍ତି ଯେହୁ
ସୈନିକ ଅମର ହୋଇବେ ଯେ ସେହୁ ।
ହୋଇବ ଏ ସେନା ବଡ଼ ଶକ୍ତିଶାଳୀ
ହୁଙ୍କାରେ ପଡ଼ିବ ପ୍ରତିପକ୍ଷ ଟଳି ।
ଗୋବର୍ଦ୍ଧନେ ହାତ ଲଗାଇବା ପାଇଁ
ଦେଲେ ଯେହୁ ଡାକ ଜଗନ୍ନାଥ ସାଇଁ
ତେସନ ଦରିଦ୍ରେ ଲକ୍ଷେ ଲକ୍ଷେ ଦାନ
ଦେଲେ ବିନା ଯୁଦ୍ଧେ ଜୟୁଛି ବନ୍ଧନ ।”

ଯନ ସଦ୍ଭାବନେ ଏହି ଆନ୍ଦୋଳନ
କି ରୂପ କରିବ ତାହା ସେ ଧାରଣ,
ଲୋକେ ଯେ ଏସନ ପ୍ରଶ୍ନ ପଚାରନ୍ତି,
କେହି ଅବା ପୁଣ ଏମନ୍ତ ଭାବନ୍ତି
ସେତେବେଳଯାଏ ଦେଇ ଯେ ନ ଥିବେ
ସତ୍ୟାଗ୍ରହ ହେବ ତାଙ୍କ ସହ ତେବେ ।
ଏବେ ତ ଚାଲିଛି ଏକ ସତ୍ୟାଗ୍ରହ
ପୁଣ କାହିଁପାଇଁ ଏସନ ଆଗ୍ରହ ?
ସତତ ପାଦରେ ଚାଲି ବୁଲିଥିବା
ଘରେ ଘରେ ଯାଇ ସଦା ବୁଝାଇବା
କୁହଇ କି ଏହା ସତ୍ୟାଗ୍ରହ ଭଲେ ?
ନାହିଁ ସତ୍ୟାଗ୍ରହ ଏହା ସମ ତୁଲେ ।
ଯଦି ଖୋଜୁଥାଅ ଠାଣୁଆ ତହିଁରୁ
କହି ହେବନାହିଁ ସେ କଥା ଏବଠୁଁ ।
ମନେ ରଖିଥାଅ ସତ୍ୟାଗ୍ରହେ ପୁଣ
ଅତି ସାବଧାନେ ପକାଅ ଚରଣ
ଅନେକ ଥୋଇଲେଣି ମାସ୍ତାଙ୍କ ମୁରତି
ପ୍ରକୃତ ରୂପର ଘଟିଛି ବିକୃତି
ଠାଣୁଆ ନାମରେ ଛପୁଛନ୍ତି ଗୀତ
ଭୁଲି ମୂଳତତ୍ତ୍ୱ ଜନମାଇ ଭୀତି
ଅବା ଅକଡ଼େଇ ଦେଇ ନାନା କଷ୍ଟ
ଭାଙ୍ଗିଚୁଙ୍କି ଯେତେ କରି କେତେ ନଷ୍ଟ
ସତ୍ୟାଗ୍ରହ ବୋଲି ବଜାଇ ଡିଣ୍ଡିମ
ଜନମାନ୍ତି ଜନ ମନରେ ଭରମ ।

ଟାଣୁଆ ଶବଟି ଖାପ ନାହିଁ ଖାଏ
ନରମ ଗରମ ଦନ୍ତୁ ଦନ୍ତୁ ହୁଏ ।
ଅଧିକାଂଶ ସଙ୍ଗେ ହେଲେ ଭଜାଟଣା
ଧରୁଛନ୍ତି ଏକ ନବୀନ କଳ୍ପନା
ଟ୍ରାମ ରେଲଗାଡ଼ି ଆଗେ ବସିଯାଇ
ବହୁତ ଯାତ୍ରୀଙ୍କୁ କଷଣ ଯେ ଦେଇ
ଛିଣ୍ଡାଇଣ ତାର ଅବା ପୋଡ଼ି ଗାଡ଼ି
ସତ୍ୟାଗ୍ରହ ନାମ ଦଅନ୍ତି ଯେ ଛାଡ଼ି ।
ଅନ୍ନ କରିବାର ବାହାନା ଧରଣ
ଅବା ପ୍ରଦର୍ଶନ ଇଚ୍ଛାରେ ଯେ ପୁଣ
ବହୁ ସଂଖ୍ୟା ଧରି ଚଢ଼ାଉ ଅଫିସ
ଦ୍ୱାର ବାଟ ରୁନ୍ଧି ଜନମାନ୍ତି ହାସ ।
ଶୁଭକର୍ମେ ନାହିଁ ସଂଖ୍ୟାର ଯେ ସ୍ଥାନ
ଜନମାଏ ଡର ପ୍ରତିପକ୍ଷ ମନ ।
ଏସନ ବିକୃତ ତାକୁ କରିଲେଣି
ମୂଳତତ୍ତ୍ୱ ତାର ମିଳେଇ ଗଲଣି,
ହୃଦ ବଦଳିଲେ ସିଦ୍ଧ ସତ୍ୟାଗ୍ରହ
ତାହାର ଶେଷରେ ବଢ଼ିଯାଏ ସ୍ନେହ
ବୁଝାଇ ବଗୁର ତରଳାଇ ମନ
ହୃଦ ପାଲଟିବା ପ୍ରଧାନ ସାଧନ ।
ଉପାୟ ଖୋଜିବା ସୁଯୋଗ ଆଶାରେ
ରହିଅଛୁ କଣ୍ଟା ଆମରି ଆଗରେ
ସମସ୍ତ ଶକତି ଲଗାଇଣ କେବେ
ନ ମିଳଇ ସିଦ୍ଧି ସମସ୍ୟାରେ ଯେବେ,

ଖୋଜିବାର ବେଳ ଆଗେ ଆସିଯାଏ
ଉପାୟ ପ୍ରକୃତ ଆପେ ଦର୍ଶିଯାଏ
ଅହିଂସା ନୀତିରେ ସମସ୍ୟା ସାଧନ
ଖୋଜିବେ ସେ ବାଟ ଆମ 'ହନୁମାନ'।
ହନୁମାନ ଯେନେ ସୀତାଙ୍କ ସନ୍ଧାନ
କରି ଲଭିଛନ୍ତି ସୁଯଶ ମହାନ,
ଆମର ସଇନେ ହୋଇ ହନୁମାନ
କରିବେ ତେମନ ସମସ୍ୟା ସାଧନ।
ନାହିଁଟି ଏଥିରେ ବନ୍ଧା ଗଡ଼ା ନୀତି
ଦର୍ଶିବ ଉପାୟ ଥିଲେ ସତ୍ୟ-ପ୍ରୀତି
ଶକ୍ତି ନ ଲଗାଇ କଲେ କାଳ କ୍ଷୟ
ଛାଡ଼ିବେ ସୁଯୋଗ ସୁବର୍ଣ୍ଣ ସମୟ
ତହିଁରୁ ପ୍ରମାଦ ଘଟିବ ଯେ ହେଲେ
ସେଥିକୁ ସତର୍କ ରହୁଥାଅ ଭଲେ।

୨୬।୧।୬୭
ପୁରୀ

---

ମୁଦ୍ରାକର—ଶ୍ରୀ ବଳଦେବ ଦାସ, ଗ୍ରାମସେବକ ସମବାୟ ପ୍ରେସ,
ବାଖରାବାଦ, କଟକ—୨

